# ପାନ୍ଥଶାଳାର ପଥିକ

ରାତି ଗତେ ତରା ଲୁଚିଲେ ଲାଜରା,
ଦିବସର ଅଭିଷେକ;
ପ୍ରାଚ୍ୟାକାଶେ କିଏ ଅଗ୍ନି ପିଣ୍ଡଟିଏ
ଫିଙ୍ଗିଦିଏ ଦେଖ ଦେଖ । -୦୧

ଉଦ୍ରଥ ଡକାରେ ପାନ୍ଥଶାଳା ଦ୍ୱାରେ
କିଏ କହେ ଖୋଲ ଖୋଲ,
ଘଡିକର ପରେ ଅଫେରା ପଥରେ
ହେବ କାହା ହରିବୋଲ । -୦୨

ନୂତନ ବରଷେ ତା ମଧୁ ପରଶେ
ଜାଗେ ନବ ଅଭିଳାଷା,
ନବାରୁଣପାତେ ନବପ୍ରାଣ ସାଥେ
ପ୍ରତ୍ନ ଗ୍ରନ୍ଥେ ନବ ଭାଷା । -୦୩

ସିନ୍ଧୁତଟଧାମ ହର୍ମ୍ୟ ଅଭିରାମ
ହଜିଗଲା ଦେଖୁଦେଖୁ;
ବଲ୍ଲୀରେ ପଲ୍ଲବ ଖେଳିଲେ ଦୁର୍ଲଭ
ଏ କବିତା ଲେଖୁଲେଖୁ । -୦୪

ନାହିଁ ଉଦୟନ ପ୍ରଦ୍ୟୋତରାଜନ
ସୁବର୍ଣ୍ଣର ତାଳବନ,
ମଧୁରସା ତରୁ ଦିଏ ତା ଦେହରୁ
ସେହି ସୌମ୍ୟ ରସାୟନ । -୦୫

ନାହିଁ ସେ ଗାୟନ ଯେ ମନ୍ତ୍ର ସାଧନ
ପୋଥିରେ ରହିଛି ଶୁଖି,
"ଓଷ୍ଠକେ ରକ୍ତିମା ଦିଅ ଗୋ ପ୍ରତିମା,"
ପକ୍ଷୀ କହେ, "ସୂର୍ଯ୍ୟମୁଖୀ !"-୦୬

ଆଜି ଏ ଶୀତରେ ଭରି ଦିଅ ଥରେ
ଅଧରେ ମଦିରା ପାନ,
ସମୟର ପକ୍ଷୀ କ୍ଷଣେ ରହିବ କି?
ନିମିଷେ ଉଡ୍ଡୀୟମାନ । -୦୭

ପ୍ରଭାତର ଫୁଲ ସୁଷମା ଅତୁଳ
ସଞ୍ଜ ହେଲେ ଯାଏ ଲୋଟି,
ଏ ବୀର ସକଳେ ଶ୍ମଶାନ ଅନଳେ
ଜଳି ଯିବେ ଗୋଟି ଗୋଟି । -୦୮

ତେଜି ବୀରଗଣେ ଆସ ଏ ପ୍ରାଙ୍ଗଣେ
ନଦୀତଟ ତରୁତଳ,
ତାଙ୍କ ବୀରପଣ, ମହିମାମଣ୍ଡନ,
ଅକାରଣ, ସବୁ ଛଳ । -୦୯

ଏ ପାରେ ଶ୍ୟାମଳ ପଲ୍ଲବ ପାଟଳ,
ସେପାରେ ନିର୍ଜଳ ଧରା,
ଆସ ଏ ପଠାରେ ନାହିଁ କେ ଏଠାରେ
ପ୍ରଭୁ କି ତା ବୋଲକରା । -୧୦

ମଦିରାଘଟକ ଗୀତିକାପୁସ୍ତକ
ଆହାର ପାତ୍ରକ ଧରି,
ଗାଅ ଏଠି ଗୀତ, ଦ୍ୟୁଲୋକ ନିଶ୍ଚିତ
ଆସିଯିବ ଅବତରି । -୧୧

କିଏ କହେ ଧରା ଆଜି ରଙ୍ଗଭରା,
କେ କହେ ଆଗାମୀକାଲି,
ଗାଅ ସାମ୍ପ୍ରତିକ, ଦୂର ବୈତାଳିକ
ତା ପଥରେ ଯାଉ ଚାଲି । -୧୨
୨୦୧୮-୧୨-୧୦

ଗୋଲାପର କଳି ହସି କରେ ଅଳି—
ତୋଳି ନିଅ ମୋର ମାଳୀ,
ତୁମ ଉପବନେ ରଖିବ ଯତନେ,
ମୁଁ ବଡ ନିରେଖ ବାଳୀ ।-୧୩

ବାଲିଭୂମିପରେ ଗାଲିଚା ରୂପରେ
ଘଡିକ ତୁଷାର ପରି
ଆଶାର ସାରସୀ ନ ଦେଖି ସରସୀ
ତୃଷାତୁରେ ଯାଏ ମରି । -୧୪

ମହା ଧନପତି, ଧନହୀନ ଅତି,
ଯିବେ ସେ ମଶାଣି ପରେ,
ଯହିଁ ନିଆଁ ନାହିଁ ଜଳି ଯିବା ପାଇଁ
ମନ ହେବ ଆଉ ଥରେ । -୧୫

ଦିବସ-ରଜନୀ ଆକାଶ-ଅବନୀ
ଚତୁରଙ୍ଗ ଖେଳଘରେ
କେତେ ରାଜା ଆସି ଗଉରବେ ଶାସି
ଭାସିଗଲେ ପରେପରେ । -୧୬

ରାଜମହାରାଜ ସମାଧିରେ ଆଜ
ଅଣ୍ଡଜ-ଶ୍ୱାପଦ ନାଟ,
କିଏ ପାଦ ଝାଡେ ବର୍ଜ୍ୟ କିଏ ଛାଡେ,
ରାଜା ପଢେ ନୂଆ ପାଠ । -୧୭

ଲାଗେ ଥରେଥରେ ବୀର ରକତରେ
ନାଲି ରଙ୍ଗ ଧରେ ଫୁଲ,
ସବୁ ସୁବାସିତ ଫୁଲରେ ସଞ୍ଚିତ
ବୁକୁଚିରା ପ୍ରେମ-ଝୁଲ । -୧୮

ଏଇ ଉପବନେ ଭରା ଯଉବନେ
ଫୁଲ ଦେଖ ନଦୀ ତୀରେ,
ପ୍ରେମିକଯୁଗଳ ଥିବେ ସେ ଭୂତଳ,
ପାଦ ଦିଅ ଧୀରେ ଧୀରେ । -୧୯

ଗତକ୍ଳେଶସ୍ମୃତି ଅନାଗତଭୀତି
ଯେ ମଦିରା ରଖେ ଦୂରେ,
ସେଥିରେ କଳସୀ ଭରିଦେ ପ୍ରେୟସୀ,
ବେଗେ ଯିବି ଆନ ପୁରେ । -୨୦

ଆତ୍ମୀୟସ୍ୱଜନ ପ୍ରିୟପରିଜନ
ସେ ମଦିରା ପାନ କରି,
ମହାକାଳସ୍ରୋତେ ଗଲେ ଶ୍ୱେତପୋତେ
ନିୟତିକୁ ଅନୁସରି । -୨୧

କିଏ ଖାଲି କରି ଗଲା ଏ କୋଠରୀ
ଆମେ କଲୁ ଆମୋଦନ,
କାଲି ଆମ ପରେ ଆସିବ ଏ ଘରେ,
କିଏ ସେ କୁଳନନ୍ଦନ? -୨୨

ମାଟିଗଦାତଳେ ଚଳିବ ସକଳେ,
କର ଏବେ ସୁଧା ପାନ;
ବିନା ମଧୁରସା, କବିତା ସରସା,
ବାଦ୍ୟହୀନ ସେହି ସ୍ଥାନ । -୨୩

କିଏ ଖୋଜେ ଆଜି ସୁଖସ୍ୱପ୍ନରାଜି,
କେ କହେ ଆଗାମୀ କାଲି,
କହେ କେ ତାନ୍ତ୍ରିକ ଏସବୁ ଅଳୀକ,
ଦୁଇ ପୁର ମରୁବାଲି । -୨୪
୨୦୧୮-୧୨-୧୧

ଯେତେ ପ୍ରାଜ୍ଞଜନ କଲେ ପ୍ରବଚନ
ଇହ, ପର ଲୋକ କଥା
ଶେଷେ ରସାତଳେ ନିଦ୍ରିତ ସକଳେ,
ସେଥିରେ କି ପ୍ରସନ୍ନତା? ୨୫

ତେଜି ଜ୍ଞାନୀଗଣେ ତର୍କ ବିତର୍କଣେ,
ଅସ ମୋର ହାତ ଧରି,
ଛୁଟିଛି ଜୀବନ ପ୍ରଭାତ ସୁମନ
ନିଶ୍ଚିତ ମରଣ ପରି । ୨୬

ନବୀନ ଯୌବନେ ବିଦୁଷକଜନେ
ଏ ବିଷୟେ ମିଳି ଥିଲି
ଯେଉଁ ପଥ ଦେଇ ଭେଟିଥିଲି ସେହି
ପଥ ଦେଇ ଲେଉଟିଲି । ୨୭

ଜ୍ଞାନୀଙ୍କ ମତରେ ମୋ ନିଜ ହାତରେ
ଜ୍ଞାନମଞ୍ଜି ଥିଲି ବୁଣି,
ଭାସି ଜଳ ସ୍ରୋତେ ଆସି ଏ ଜଗତେ
ଚକ୍ରବାତେ ଯିବି ପୁଣି । ୨୮

କି ଲାଗି ଆସିଲି ଜାଣି ନ ପାରିଲି,
ପଚାରିବା ଥିଲା ମନା,
କହି ନ ପାରିବି, କେବେ କାହିଁ ଯିବି
ପୁଣି ହେବି ବାଟବଣା । ୨୯

ଅଜଣା କାରଣେ ଅଚିହ୍ନା ଆନନେ
ଲାଗିଲା ମମତା ଡୋର,
ମହୁଲୀ ନିଶାରେ ମୋ ଦଶଦିଶାରେ
ସମ୍ମୋହନ ହେଲା ଘୋର । ୩୦

ତେଜି ଏ ଭୁବନ ସ୍ୱର୍ଗ ସିଂହାସନ
ପାଇ ମଧ ଅନାୟାସେ,
ମରଣ, ନିୟତି ନିକଟୁ ମୁକତି-
ମନ୍ତର ନ ଥିଲା ପାଶେ । ୩୧

ପାଇଲି ଦୁଆର, କୁଞ୍ଚିକା ତାହାର
ଜାଣେନା ହଜିଲା କାହିଁ,
ପରଦା ସେ ପାରେ ଆଳାପି କାହାରେ
ଦେଖିବାରେ କେହି ନାହିଁ । ୩୨

ଚାହିଁ ନୀଳାମ୍ବରେ ମାଗିଥିଲି ଥରେ—
ଦିଅ କିଛି ଦିଗ୍ଦର୍ଶନ,
"ଏ ଅନ୍ଧପୁତୁଳି ରଖି ଥା ସମ୍ଭାଳି"
ଶୁଣି ହେଲି ନିର୍ବଚନ । ୩୩

ତହୁଁ ଏ ମୃତ୍ତିକା ଅଚିହ୍ନା ଘଟିକା
ଡାକି କହେ—ଶୁଣ ଭାଇ
ମୋ ଦେହରୁ ସୁରା ପିଅ ପେଟପୂରା,
ମଲେ ତୁ ଫେରିବୁ ନାହିଁ । ୩୪

ଲାଗିଲା ସେ ମାଟି ଧରି ପରିପାଟୀ
ଜୀବନରେ ଥିଲା ଦିନେ,
ତା ଓଠ ଚୁମ୍ବନ କଲି ଘନଘନ,
ମୋଠୁ ସେ ନଥିଲା ଭିନେ । ୩୫

୨୦୧୮-୧୨-୧୨

ଚନ୍ଦ୍ରାଲୋକେ ଥରେ କୁମ୍ଭକାର ଘରେ
ମାଟିର ଫିଟିଲା ପାଟି—
ସମ୍ଭ୍ରମ ପ୍ରହାର କର କୁମ୍ଭକାର,
ମୁଁ ତୁମ୍ଭ ପଞ୍ଜର କାଠି । ୩୬

ଆଜିର ଦିବସ କରି ଥା ସରସ,
ସମୟ ଯାଉଛି ଚାଲି;
କି କରିବ ହିତ ନ ଥିଲା ଅତୀତ,
ଅଦେଖା ଆଗିମୀକାଲି ! ୩୭

କ୍ଷଣେ ଜୀବନ୍ୟାସ କ୍ଷଣେ ସର୍ବନାଶ
ଯାତ୍ରୀ ଆସ ରାତ୍ରୀ ଗତେ,
ଆଗାମୀ ସକାଳେ କି ଅଛି କପାଳେ
ଜଣା ନାହିଁ ମରୁପଥେ । ୩୮

କି ପାଇବ ଭ୍ରାନ୍ତି- ପୂର୍ଣ୍ଣ ଅସ୍ତି-ନାସ୍ତି
ଅନ୍ତହୀନ ସମାଧାନେ
ନାହିଁ ଅଣୁମାତ୍ରେ ଅଛି ଯା ଏ ପାତ୍ରେ
ଆଜିର ମଦିରାପାନେ । ୩୯

କହିଛି ଅାଗରୁ କେବେଠୁ ମୋ ଘରୁ
ନାନା ବିଦ୍ୟା ପ୍ରମାଥିନୀ
କରି ବିତାଡନ କରିଛି ବରଣ
ଦ୍ରାକ୍ଷାକନ୍ୟା ବିମୋହିନୀ । ୪୦
୨୦୧୮-୧୨-୧୨

ଊର୍ଦ୍ଧ୍ୱ ଅଧଃ ଜାଣି ସୂତ୍ରେ ରେଖା ଟାଣି
ଜୀବନଟା ଗଲା ବିତି;
ହେଲେ ଅନ୍ତରାଳେ ଥିଲା କାଳେ କାଳେ
ମମତାମଦିରାପ୍ରୀତି । ୪୧

ଥରେ ମୋ ସଦନେ ଅନ୍ଧାର ଲଗନେ
ଆସି କିଏ ଦେବଦୂତ,
ଢାଳିଲେ କଳସ, ଝରିଲା ସରସ
ସେହି ପ୍ରେମରସାମୃତ । ୪୨

ଯେ ସୁଧାପାନରେ ତିନି ଭୁବନରେ
ଚୌରାଅଶି ଲକ୍ଷ ଜୀବ,
ମୁଗ୍ଧ ସ୍ତମ୍ଭୀଭୂତ ବାଧ ବିମୋହିତ
ସେହି ସତ୍ୟ ସେହି ଶିବ । ୪୩

ଯେ ସୁଧା ଅସରା ଜିଣେ ବସୁନ୍ଧରା,
ବୀରରକ୍ତ କରେ ଧୀର,
ଆସ ହେ ସକଳେ ଏକତ୍ର ଭୂତଳେ
ପିଅ ସେହି ସୋମନୀର । ୪୪

ହେଜ ଏ ବିଜନେ, ତେଜ ଜ୍ଞାନୀଜନେ
ଯୁକ୍ତି-ଯୁଦ୍ଧ ଜିତିବାକୁ,
ଆସି ନଦୀତଟେ ଆହର ନିକଟେ
ଲଭ୍ୟ ଯାହା ଅଛି ତାକୁ । ୪୫

ତଳଠୁ ଉପର ଦକ୍ଷିଣ ଉତ୍ତର
ସବୁ ସେ ବୁଢୀମା କଥା,
ସିନ୍ଦୁକରେ ଥୁଆ ସିନ୍ଦୂର ଫରୁଆ
ଶୁଆର ନ ମିଳେ ମଥା । ୪୬

ମଦିରା ନିର୍ଝର, ପ୍ରେମିକା ଅଧର,
ସବୁ ହେବ ଦିନେ ପର;
ଅଛ, ଥିବ ଶୂନ୍ୟ , ହେବ ନାହିଁ ନ୍ୟୂନ,
ରଖ ନାହିଁ ତିଳେ ଡର ! ୪୭

ମୁଁ ଥାଉଁ ଜୀବନେ ଏ ମଧୁ ଲଗନେ
କର ସାଥେ ସୁରାପାନ,
ଯେବେ ମୃତ୍ୟୁଦୂତେ ଭେଟିବ ଅଗ୍ରତେ
ନ କରିବ ଅଭିମାନ । ୪୮

ଭବଚତୁରଙ୍ଗେ ନିୟତି ତା ଢଙ୍ଗେ
ମଣିଷକୁ ଗୋଟି କରି
ଏଘର ସେଘର ଚଳାଇ ନିଜର
ପେଟିକାରେ ଦିଏ ଭରି । ୪୯

କିଏ ଦେଖିଛନ୍ତି ଅମତି-ସମ୍ମତି
କନ୍ଦୁକର କିଛି ଥାଏ ?
ଯିଏ କ୍ରୀଡାଙ୍ଗନେ ରଖେ ସେହି ଜାଣେ
ଏ ନୀତିରୁ କିସ ପାଏ ! ୫୦

ନିରନ୍ତର ଗତି ଲେଖୁଛି ନିୟତି
ଇତିଦୁର୍ଗତିର ତିଥି;
ପୋଛିବନି ତାର ଛୋଟ ଗୋଟେ ଗାର
ତୁମ ସ୍ତୁତି, ପୁଣ୍ୟକୃତି । ୫୧

ଯେ ଆକାଶ ତଳ ତୁମେ ଚଳାଚଳ
କ୍ଷୁଦ୍ର କୀଟ ଭୂମଣ୍ଡଳେ,
ତାକୁ ଡାକି ଭାଇ କିଛି ଲାଭ ନାହିଁ,
ସେ ବି ତା ଭାଗ୍ୟ କବଳେ । ୫୨

ପ୍ରଥମ ନିମିଷେ ଲେଖି ରଖିଛି ସେ
ଶେଷ ଦିବସର ଗୀତି,
ପ୍ରଥମ ପ୍ରଭାତେ ଲେଖିଛି ସେ ହାତେ
ଶେଷ ମରଣର ତିଥି । ୫୩

ଲେଖିଛି ମୋ ଶେଷ ଗତି ସବିଶେଷ
ସେ ଆଦେଶେ ନିରିମମ,
ମହିଷ ଆସନେ ମୋ ଜନମ ଦିନେ
ଚିତ୍ରଗୁପ୍ତ ସାଥେ ଯମ । ୫୪

ସେ ଯେଉଁ ଦୁଆର ଚାବି ନାହିଁ ଯାର
ଆର ପାରେ ଆଶା ଅଛି,
ମୋ ଦେହର ହାଡ ନେଇ କିଏ କାଢ
ତା ଲାଗି ଗୋଟିଏ କଞ୍ଚି । ୫୫.

ବାସ୍ତବ କିରଣ ଗୋଟିଏ ସ୍ଫୁରଣ
ମିଳନ୍ତା କି ପାନ୍ଥଶାଳେ !
କି ହେବ ସେ ଥିଲେ ମନ୍ଦିର ଗହଳେ
ଦର୍ଶନର ଅନ୍ତରାଳେ? ୫୬

ଗଢିଲ ଯେ' ସାରା ପାପର ପସରା
ପଦେପଦେ ଚଉପାଶେ;
ହେଲେ ମୋ ଆପଦ ଦେବ ଅପବାଦ,
ପାପମନା ବୋଲି ଶେଷେ ? ୫୭

ତୁମେ ରଖିଅଛ ପାପର ପାବଛ
ଆଗପଛ ଅନୁକ୍ଷଣ,
ଖସିଗଲେ କେହି- କାହିଁ ନରଦେହୀ
କି ଲାଗି ନାହିଁ ମାର୍ଜନ ? ୫୮
୨୦୧୮-୧୨-୧୩

ଥରେ ପୂର୍ଣ୍ଣମାସୀ ରଜନୀରେ ଶଶୀ
ଉଦୟର ସମୟରେ,
କୁଲାଳ-କୁଟୀର- ମୃଦ୍ଘଟ ମାଟିର
ଆଳପିଲେ ପରସ୍ପରେ । ୫୯

ବଚନ କାହାର ଥିଲା ପରିଷ୍କାର,
ସନ୍ତର୍ପଣେ କହେ କିଏ —
ଜଣା ନାହିଁ କିଏ କୁମ୍ଭକାର, କିଏ
କୁମ୍ଭ ! କହେ କୁମ୍ଭଟିଏ । ୬୦

ଆରେକ କହିଲା ଯେ ମୋତେ ଗଢିଲା
ମାଟିରୁ ମାଠିିଆ କରି,
କେବେ ସେ ମିଶାଇ ଦେବ ମୋତେ ଭାଇ
ସେ ମାଟି କାଦୁଅ କରି । ୬୧

କହେ ଘଟଟିଏ ଏଇଥିରେ ଯିଏ
କରିଛି ମଦିରା ପାନ,
କାଲି କ୍ରୋଧ ଭରି ଦେବ ନଷ୍ଟ କରି,
କି ଚପଳ ସେ ଅଜ୍ଞାନ ? ୬୨

କେହି ତା ଉତ୍ତର ନ ଦେଲେ ସତ୍ୱର
ବିରାଜିଲା ନୀରବତା,
ବୃଦ୍ଧ କୁଲାଳର ଥରିଲା ପୟର,
ବୁଜି ଗଲା ଆଖିପତା । ୬୩

ଆନ ଘଟ କହେ ପାନ୍ଥଶାଳା ଗୃହେ
କହୁଥିଲେ ରକ୍ଷୀଜନ,
ରଙ୍ଗ ବୋଳି ଥରେ ଦେବେ ତା କାନ୍ଧରେ,
ଚଳି ଯିବ କିଛି ଦିନ । ୬୪

ଲଲାଟେନ୍ଦୁ କବି ୨୦୧୮ ୧୨୧୬

ଆରେକ କଳସ କହୁଛି ସରସ
ସୁରା ମୋ ଯାଇଛି ସରି,
ଦିଅ କିଛି ଥରେ ମୋ ଶୂନ୍ୟ ଉଦରେ,
ମାଦକତା ଯାଉ ଭରି । ୬୫

କଥା ଏହିପରି ଚାଲିଥିଲେ କରି
ମାଟି ପାତ୍ର ଖୋଲି ପାଟି,
ଆସିଲା ଶବଦ କୁମ୍ଭକାର ସ୍କନ୍ଧ
ଅସ୍ଥି ଚାଲିଅଛି ଫାଟି । ୬୬

ଏ ଜୀବନ ଅନ୍ତେ ଅବଗାହି ମୋତେ
ପ୍ରଶାନ୍ତିର ସୋମନୀରେ,
ସେ ତରୁପତର ତଳେ ଏ ଶରୀର
ଶୋଇଦେବ ନଈ ତୀରେ । ୬୭

ସେ ଉପବନର ପତର, ଫୁଲର
ବିଛୁରି ମଧୁର ବାସ
ବ୍ୟଥିତ ପଥିକେ ଆକର୍ଷି ଘଡିକେ
ପଥକ୍ଳେଶ କରୁ ହ୍ରାସ । ୬୮

ଲଲାଟେନ୍ଦୁ କବି ୨୦୧୮୧୨୧୮

ଜୀବନ ଯାକର ପୂଜି ମୁଁ ପଥର
ହେଜି ଅଛି ଅପବାଦ,
ହାରି ସନମାନ ଜରା ହୀନିମାନ,
ଗୀତ ହେଲା ଅବଷାଦ ।୬୯

ପୂରୁବେ ଏପରି ଅନୁତାପ କରି
ବିନୟେ କହିଛି ଭାଷା,
ଦେଖି ଏ ମଳୟ, ନବ ପୁଷ୍ପଚୟ
ଜାଗେ ପୁଣି ନବ ଆଶା ।୭୦

କ୍ଷଣେ ତୃପ୍ତିପଥେ କ୍ଷଣେ ଦ୍ଯୁତିରଥେ,
ଏ ଜଗତେ କଲି ବାସ,
ଏବେ ଏ ସଂସାରେ ଆସନ୍ନ ନିଶାରେ
ନାହିଁ ଆଶା-ଅବକାଶ ।୭୧

ହଜିଲା ମଳୟ, ଶୂନ୍ୟ ପ୍ରେକ୍ଷାଳୟ,
ରଙ୍ଗମଞ୍ଚ ଶୂନ୍ୟପ୍ରାୟ,
ଚୂତକ କାନନ ପଲ୍ଲବ ଗହନ
ପକ୍ଷୀହୀନ, ଅସହାୟ ।୭୨

ହେ ପ୍ରେମ-ଈଶ୍ବରୀ ଥାଆନ୍ତା ଏପରି
ଶକତି ଆମରି ପାଶେ
ଗଢିବାକୁ ଧରା ପ୍ରୀତି-ସୁଖ ଭରା
ବିଷାଦର ଏ ନିବାସେ ।୭୩

ଶ୍ବସ୍ତନ ବାସରେ ଦିବସ ନାଶରେ
ଆକାଶ ଦେଶରେ ଥାଇ,
ମୋ ଶୂନ୍ୟ ସଦନେ ବିଷଣ୍ଣ ବଦନେ
ଶଶୀ ନ ପାରିବ ଚାହିଁ ।୭୪

ଭାଜିଲେ ଏ ଘଟ ସମାଧି ନିକଟ
ଯିବ ଯେବେ ସାଥୀ ମୋର,
ବଂଶୀଟେ ବଜାଇ ଆସିବ ଶୁଣାଇ
ଅନାହତ ନିତ୍ୟସ୍ବର ।୭୫
୨୦୧୯୦୧୧୫ - ୦୪୩୧

କହେ ପାନ୍ଥଶାଳା- କାନ୍ଥ ପାରେ ବାଳା
ଅଭ୍ୟନ୍ତରେ ଲାଜେ ଚାହିଁ -
ମଦିରା ପିଆଲା ! ମାରି ଦିଅ ଜ୍ବାଳା,
ମାଳୟେ ମଳୟ ନାହିଁ। ୭୬
ମାଳୟ= ଯାତ୍ରୀଦଳର ପାନ୍ଥାଶାଳା,

ବିନା ଉତ୍ତେଜନେ ଘୋର ପ୍ରଭଞ୍ଜନେ
କିଏ ସିଞ୍ଚେ ବିଶ୍ବ ସାରା
ନିଃସ୍ବର ଲଲାଟେ ନଶ୍ବର କପାଟେ
ବିସୃତ ରଭସଧାରା !! ୭୭

ବିସୃତ= ବିସ୍ତାରିତ **stretched out, etended;** ରଭସ= **poison;**

 କ୍ଷୁଭିତ ବଦନେ                    ସାଦିତ ଜୀବନେ
        ଯେ ଦିଏ ପ୍ରମାଥ ଭରି,
ତାର ସମ୍ପ୍ରହାର                    କୃପାର ବିସ୍ତାର
        କହିବି କି ସହଚରୀ ?     ୭୮

କ୍ଷୁଭିତ= କ୍ରୁଦ୍ଧ; ସାଦିତ= ନଷ୍ଟ; ପ୍ରମାଥ= ସନ୍ତାପ; ପ୍ରତିବୈର= ;

ଦ୍ୟୁଲୋକ କଳନା                    ଆଶାର ଲଳନା;
        ସର୍ବଗ-ନିର୍ଦାହ ରସା;
ସେ ତମିସ୍ର ଗର୍ଭେ                    କ୍ଷିପ୍ତ ହେବେ ସର୍ବେ
        ଖର୍ବ ହେଲେ ଜୀବଦ୍ଦଶା |          ୭୯

(ସର୍ବଗ-ନିର୍ଦାହ ରସା= ଜୀବାତ୍ମାର ଜ୍ଵଳନ ହିଁ ନର୍କ;)

ସାରା ଚରାଚର                    ଶୋକର ଆକର,
        କଥା ଏ ପ୍ରକାର ନୁହେଁ;
ତଥାପି କରତା !                    ବିଷାଦ ବାରତା
        କି ଲାଗି ମରମ ଛୁଏଁ ?     ୮୦

ଲେଖିଲେ ସଂଗୀତ                    କି ଲାଗି ବ୍ୟଥିତ
        ହାରିତର ଦିଶେ ମୁଖ,
ସୁଖ ଯା ପ୍ରତୀତ                    ହୁଏ ଅନ୍ତର୍ହିତ,
        ଲାଗେ ନିଜେ ଅଲାଜୁକ !          ୮୧

ନିଶା ଅଭିସାରେ                    ଆଶାର କାସାରେ
        ଶୁଖି ଶୁଖି ସରେ ବାରି;
ଉଦ୍ବୋକ୍ଷେ ସନ୍ନ୍ୟାସୀ                    ସଂସାର ନିବାସୀ
        ଆସେ୍ୟ ଭାଷେ୍ୟ ଅଶ୍ରୁହାରୀ |     ୮୨

ଭାଷ୍ୟ= ବକ୍ତବ୍ୟ

ଲଳାଟେନ୍ଦୁ କବି  ୨୧୦୯୦୨୧୨

ହେଉ ସେ ସଦନ ଭୂଭୃତ ଭବନ
ହେଉ ସେ ଅଳକାପୁରୀ,
ମାଦକତାଭରା ଥିଲେ ହେଁ ଝର୍ଝରା,
ଥାଉ ସଦା ଜୟତୂରୀ; ୮୩

ଆସନ୍ତୁ ସେ ଦେଶେ ନିତ୍ୟ ସ୍ୱର୍ଣ୍ଣବେଶେ
ସୁରବସ୍ତ-ସହଚରୀ,
ସେ ପ୍ରାନ୍ତେ ପ୍ରତ୍ୟହ ପତ୍ର ପୁଷ୍ପଚୟ
ପାଦପରୁ ପଡେ ଝରି | ୮୪

ଭୂଭୃତ= ରାଜା; ଝର୍ଝରା= କୁମ୍ଭା, ଛିନ୍ନା, ଶୁଣ୍ଡା, ବର୍ବଟୀ, ଭୋଗ୍ୟା,
ଗ୍ରାମଣୀ, ମସୁ(ସୂ)ରା, ବାରବଧୂ, ବେଶ୍ୟା, ; ସୁରବସ୍ତ= ଦେବପୁତ୍ର;
୨୦୧୯୦୨୧୩୧୧୦୦

ଗଲ ଯେତେ ଜନ ତେଜି ଏ କେତନ
ଧ୍ୱାନ୍ତ ବର୍ମ୍ମ ଦ୍ୱାର ଖୋଲି,
ଏ କି ବିଡମ୍ବନା ଫେରି କେ କହ ନା
ଗଲ କେଉଁ ଭାବେ ବୋଲି | ୮୫

ଯେବେ ପୁଣ୍ୟ ବଳେ ଅତୀନ୍ଦ୍ରିୟ ଚଳେ
ଅନାୟାସେ ବିହାୟସେ,
ଥାଏ କିମ୍ପାଁ ଦେହୀ ଯଥା ମଧୁଲେହୀ
ମର୍ତ୍ତ୍ୟଲୋକ-ତାମରସେ ? ୮୬

ଥରେ ଅନ୍ୱେଷଣେ ମୋ ଅନ୍ତଃକରଣେ
ପେଷିଥିଲି ଦେବାସୁରେ;
ବହୁଡିଲା ବୁଝି ଅଛି ଭାଙ୍ଗି ରୁଜି
ସ୍ୱର୍ଗ, ନର୍କ ଚିତ୍ତପୁରେ | ୮୭

କିଏ ପରଶିଲା ପ୍ରେମର ପିଆଲା
ଧୀରେ ଧୀରେ ଆଖି ମେଲି,
ମୁଦନ୍ତେ ନୟନ ହେଲା ଅନ୍ତର୍ଦ୍ଧାନ,
ଦେଖି ମୁଁ ତ ଲେଖି ଦେଲି | ୮୮

ତିଥି ପରେ ତିଥି ଯାଉ ଥିବ ବିତି
ବିତିବ ଦିବସ ମାସ,
କିଏ କେତେ ଦିନ କରି ବିଚରଣ
ଲେଉଟିବେ ନିଜ ବାସ । ୮୯

ଆସ୍ଥାନଟେ କେହି ଦେବ ମୋତେ କହି
ଯେଉଁଠି ରଖିଲେ ପାଦ,
କେହି ମରି ନାହିଁ, ମରିବାର ନାହିଁ,
ନ ଲାଗିବ ଅପରାଧ । ୯

ଅଜାଣତେ କିଏ ଲୁଚିଲୁଚି ଦିଏ
ନାନାବିଧ ଉଦ୍ଦୀପନା ?
ଗଲେ ଏକ ପାଦ ବିଧି କରେ ବାଦ,
ଘୁଞ୍ଚିଯାଏ ସମ୍ଭାବନା । ୯୧

ଅପାତତଃ ସମାପ୍ତ